

# ଜୟମଙ୍ଗଳାଷ୍ଟକ ।

ଶ୍ରୀ ରଙ୍ଗନାଥ ଦାସ ଙ୍କ ଦ୍ୱାରା ବିରଚିତ

ଏବ ପ୍ରକାଶିତ ।

ଶ୍ରୀ କିଶୋର ଚନ୍ଦ୍ର ଯନ୍ତ୍ରାଳୟ, ଅଟିଁଡା ।

'୨୫-୨-୧୯୨୪

ଧରାକୋଟ ଯୁବରାଜଙ୍କ ବିବାହୋତ୍ସବୋପଲକ୍ଷେ ରଚିତ

# ଜୟମଙ୍ଗଳାଷ୍ଟକଂ ।

ରାଗ—ରାମକେରୀ ।

—୦—

[ ୧ ]

ବନ୍ଦେ ବୀଣାପାଣି ଶ୍ରୀବାଣୀ    ତବ ପଦ୍ମ ଚରଣେ,
ଦିଅ ସୁଆଶିଷ ଭୃତ୍ୟର    ଯାଜ ସନ୍ତାପ ଗହଣେ ।
ମୂକ ହେଉଅଛି ବାଗ୍ମୀର    ତବ କୃପା ବଳରେ,
ପଙ୍ଗୁ ଲଙ୍ଘେ ଗିରି ଗହନ    କ୍ଳେଶ ନ ଲଭି ଥରେ ।
ତବ କୃପା ପାଇ ଧରାରେ    କେତେ ମନୀଷୀ ଗଣ,
ନାମକୁ ଅମର କରାଇ    ଗଲେ ସୁର ଭୁବନ ।
ପ୍ରତିଷ୍ଠିତ ବିଜ୍ଞ କଣ୍ଠରେ    ତବ ଦିବ୍ୟ ଆସନ,
ସେ ଆସନେ ବସି ବାଜୁଛ    ବୀଣା କର୍ଣ୍ଣମୋଦନ ।
ଯାର ହୃଦେ ପ୍ରତିଧ୍ୱନିତ    ହୋଇ ସେହି ବାଦନ,
ପ୍ରସାର ଲଭୁଛି ସଂସାରେ    କରି ଚିତ୍ତ ରଞ୍ଜନ ।
ଏହି ଧରାକୋଟ ପୁରରେ    ଯୋଗ୍ୟ ସନ୍ତାନ ତବ,
"କୃଷ୍ଣସିଂହ" କବି ଉତ୍କଳ    ଥିଲେ ଉତ୍କଳ-ଗର୍ବ ।
"ଶ୍ରୀମହାଭାରତ" ଅନୁପ    କୀର୍ତ୍ତି ସ୍ଥାପି ଉତ୍କଳେ,
ଲୀନ ହୋଇଲେ କାଳ ବଶରେ    ତବ ପାଦ-କମଳେ ।

ପୁଣି ସେହି ବଂଶେ ଜନମି ରାଜର୍ଷି-ମଦନ—
ମୋହନ* ନଖିଳ ଅଗାଧ ସର୍ବଗୁଣ ସଦନ ।
ମରତ୍ୟଲୋକେ ସୁଧା ସମାନ ରାମାୟଣ ରଚନ,
ସୁପବିତ୍ର ପାପ ନାଶକ ଭକ୍ତିରସେ ପିହିତ ।
କଲ ପ୍ରକାଶିତ "ତୁଳସୀ— ରାମାୟଣ" ଉତ୍କଳେ,
ହୋଇଲେ ବରେଣ୍ୟ, କୃତାର୍ଥ ହେଲୁ ଆମ୍ଭେ ସକଳେ ।
ଉତ୍କଳ-ସାହିତ୍ୟ-ଆଶ୍ରମେ ସର୍ବଶ୍ରେଷ୍ଠ ମହର୍ଷି,
କୃଷ୍ଣସିଂହ ବଳେ ପବିତ୍ର ଯେଉଁ ଆସନେ ବସି ।
ଯେଉଁ ମହାତ୍ମାଙ୍କ ବିଜୟ— ଝାନା ଉଡ଼େ ଉତ୍କଳେ,
କୋଟୀ୨ ପାପୀ ତରନ୍ତି ଯା'ଙ୍କ କରୁଣା ବଳେ ।
"ମଦନମୋହନ" ଅଟନ୍ତି ତାଙ୍କ ବଂଶର ମଣି,
ବୃହସ୍ପତି ସମ ପଣ୍ଡିତ ଧୀର ସମ ଧରଣୀ ।
ସୂର୍ଯ୍ୟ ରଶ୍ମି ଯୋଗେ ଶଶାଙ୍କ କରେ ତିମିର ନାଶ,
ପୁଷ୍ପେ ଚୁମ୍ବି କରେ ଭ୍ରମର ତାର ଦେହ ସୁବାସ ।
ସେହିପରି "*ବ୍ରଜକିଶୋର" ଭବିଷ୍ୟତେ ଏସନ,
ଗୁଣଧର ହୋଇ 'ରଜିବେ ଏହା ଭାବଇ ମନ ।
କରେ ଚିନ୍ତା ଆଶା ଉତ୍କଳ ଏହି ବଂଶର ଲାଗି,
ହେବ ବୋଲି ବିଶ୍ୱ ମଧ୍ୟରେ ସର୍ବ ସୌଭାଗ୍ୟ ଭାଗୀ ।
ଧର୍ମକୋଟ ରାଜ ଆସନ ତଳେ ଉତ୍କଳ ରାଣୀ,
ତାହାର ଗୌରବେ *ଗୌରବା- ନ୍ୱିତ ହୋଇଲୁ ପୁଣି ।
ତାହାର ଆନନ୍ଦ ଉତ୍ସବେ ଯେତେ ନନ୍ଦଏ ଯୋଗ,
ଅକୃତଜ୍ଞ ସେହି ଅଧମ କାହିଁ ତା' ସୁଖ ଭୋଗ ।

[ ୧ ]

ଦକ୍ଷିଣର ଅଙ୍କ ଏ ରାଜ୍ୟ    ଦିବ୍ୟ ଅମର ଧାମେ,
ଦେବ ପର୍ବଣୀ ଉତ୍ସବ    ଯୁବରାଜଙ୍କ ନାମେ ।
ଯୁବରାଜ ବ୍ରଜକିଶୋର    ଆଶା ଭରସା ସ୍ଥଳ,
ଭବିଷ୍ୟେ ଉତ୍କଳ ମୁଖକୁ    କରିବେ ସେ ଉଜ୍ଜ୍ୱଳ ।
ଭାବିଣ ଉତ୍କଳ ଜନନୀ    ସର୍ବ ଶୋଭା ପ୍ରେରଣ,
କରୁଣ ମଣ୍ଡିତ୍ତ ଆନନ୍ଦେ    ରାଜାଙ୍କର ଭବନ ।
ପ୍ରକୃତିକୁ କଲା ପ୍ରେରଣ    ବାସନ୍ତୀର ସଙ୍ଗରେ,
ବାସ କରିବାକୁ ସବୁଦ    ଧରାକୋଟ ରାଜ୍ୟରେ ।
ବସନ୍ତ ନିବାସ ହୋଇଲା    ଏହି ସବୁଜ ସ୍ଥାନ,
ଦିଗ ଦିଗନ୍ତରେ ଶୁଭଇ    ବନ-ଦେବୀଙ୍କ ଗାନ ।
କିବା ବନ-ଦେବୀ-ମଙ୍ଗଳା—    କାନ୍ତି ଯୁବରାଜର,
ତାଙ୍କ ଶୁଭ ପାଇଁ ପ୍ରାର୍ଥନା    କରେ ବିଭୁ ପଦ୍ମର ।
ଦେବ ପବମାନ କାତର    ଗବେ କରନ୍ତି ଗାନ,
ଶୃଙ୍ଗ ପର୍ବତେ* ଉହ୍ମଣ    ଗୁଁହ୍ଲି ସ୍ୱନ ଆସ୍ଥାନ ।
"ସଦା ନବ ଦମ୍ପତ୍ତିଙ୍କର    ହେଉ ସର୍ବ ମଙ୍ଗଳ,"
ନର୍ମ୍ମଳ ଛଳରେ ଏଡାଣ୍ଡି    ପ୍ରଶଂସଇ କେବଳ ।
ପ୍ରକୃତ ସଙ୍ଗୀତ ଗାୟକ—    ବର ବିହଙ୍ଗ ଗଣ,
ବନ୍ଦା ପ୍ରୁପେ ରହି ଡାଲନ୍ତି    ସୁଲଳିତ ନିସ୍ୱନ ।
ଏହି ରୂପେ ଯୁବରାଜଙ୍କ    ଶୁଭ ବିବାହୋତ୍ସବେ,
ପ୍ରକୃତିର ରାଜ୍ୟ ଧ୍ୱନିତ    ହେଲା ଆନନ୍ଦ ରବେ ।

---

* ଧାରାକୋଟର ଦକ୍ଷିଣ ଦିଗସ୍ଥ ପର୍ବତ ।

[ ୩ ]

ସଦାନନ୍ଦେ ପଣ୍ଡପୂରଣ        ଧର୍ମକୋଠ ମଣ୍ଡଳ,
ସାହିତ୍ୟିକ କବି ମାନଙ୍କ        ଏହା ପବିତ୍ର ସ୍ଥଳ ।
ଅନେକେ ସାହିତ୍ୟିକ ପ୍ରବର        ଏହି ରାଜ ପ୍ରସାଦେ,
ଲଭିଣୀ ଉତ୍ସାହ ସେବନ୍ତି        ମାତୃଭାଷା ଆହ୍ଲାଦେ ।
ଯେତେକାଳ ଥିବ ଉତ୍କଳ— ଭାଷା ଏହି ଭବରେ,
ତେତେକାଳ ଏହି ରାଜାଙ୍କ  ନାମ ଘୋଷିବେ ନରେ ।

[ ୪ ]

ଧର୍ମକୋଠ ଆଜ ହୋଇଅଛି        ମହା ମିଳନ ସ୍ଥଳ,
ନାନା ଦେଶୁ ରାଜା ପ୍ରଜାଏ        ଠୁଳ'ହନ୍ତି ସକଳ ।
ବାଦ୍ୟଙ୍କ ଶବଦେ କମ୍ପାଇ        ଏହି ପବିତ୍ର ଭୂମି,
ବୃଷ୍ଟିଲୁଳା ବହି ଯାଉଛି        ଧୀରେ ରାଜ୍ୟକୁ ଚୁମ୍ବି ।
ଅଶ୍ୱ ହ୍ରେଷାରବ ମାତଙ୍ଗ—  ବୃଂହିତରେ ଧ୍ୱନିତ,
ତୋରଣ ପତାକା ମାଳାରେ  ଧର୍ମ ହୋଇ ଭୂଷିତ ।
ଲଭୁଅଛି ତୃପ୍ତି ଦର୍ଶକ        ନେତ୍ର, ଶ୍ରବଣ ମନ,
ଯୁବରାଜଙ୍କର ମଙ୍ଗଳ        ଚିତ୍ତେ କରି ଚିନ୍ତନ ।
ଆତସବାଜୀର ଗର୍ଜନେ        ଧରା ହୁଏ କମ୍ପିତ,
ଜାଣିରେ ତାହାର ଆଲୋକେ        ରାଜ୍ୟ ହୁଏ ଆଲୋକିତ ।
ସ୍ୱର୍ଗୁ ଦେବ ଦେବୀ ପୁଷ୍ପବୃଷ୍ଟି—        ପୁଷ୍ପରାଗ ନିକର,
ନୀରବରେ ଲହି ଢାଳନ୍ତି        ଯୁବରାଜ ଉପର ।
ବିହଙ୍ଗମ ଛଳ ରୂପରେ        ଦେବ ଦେବୀ ଗଣର,
ମଙ୍ଗଳ ଗୀତିକୁ ପ୍ରଚାରି        କରେ ଶୁହିଁ ନିବର ।

[ ୫ ]

"ହେଉ ଯୁବରାଜ ଆମ୍ଭର        ସମ ସୁଭାଗ୍ୟବାନ,
ଦୟାମୟ ବିଭୁ କରନ୍ତୁ        ତାଙ୍କୁ ଶୁଭ ପ୍ରଦାନ ।
ଯୁବରାଜ୍ଞୀ ଦେବୀ ସମାନେ    ହୋଇ ସୌଭାଗ୍ୟବତୀ,
ପୁତ୍ର ସମ ପ୍ରଜା ପାଳନ୍ତୁ      ଲଭି ଆୟୁଷ ଅତି" ।

[ ୫ ]

ଦୂର କାଳୁ ଯାଇ ଲଭିଛି        ଧର୍ମକ୍ଷେତ୍ର ସୁଧାମ,
ଧନେ ମାନେ ଜ୍ଞାନେ ଏ ଅଟେ    ଗଞ୍ଜାମର ଲଲାମ ।
ଶ୍ରୀ ବ୍ରଜକିଶୋର ଚାକ୍ଲୀ        ଇଲାକାର ଜମାନ,
ସେହି ଲଲାମରେ ରହିଣ      ଘୋଷି କରେ ପ୍ରଦାନ ।
ମଧୁପୁର ଦ୍ୱାର ପଦକ—      ବର ସେ ସ୍ୱଜ କନ୍ୟା,
ଏହାଙ୍କର କର ଧରଣ        ହୋଇ ଅଛନ୍ତି ଧନ୍ୟା ।
ଯୋଗ୍ୟଦ୍ରବ୍ୟ ଯୋଗ୍ୟସ୍ଥାନରେ   ହୋଇଅଛି ଜଡ଼ିତ,
ନ୍ୟାୟ ସତ୍ୟ ଧର୍ମ ପାଳନ      କରୁଅଛି ଲଳିତ ।
କାଞ୍ଚନ-ମାଳାରେ ଯେସନ      ଶୋଭେ ମଣି ଖଚିତ,
ତେସନେ ଏହି ନବ ଦମ୍ପତି      ମନ ମୁଗ୍ଧ କରଇ ।
ତେଣୁ ରାଜ୍ୟ ମହା ଆନନ୍ଦେ    ହୋଇ ଉଦ୍ବେଳିତ,
ଜୟ ଜୟ ଧ୍ୱନି ଉଠଇ,       ସଙ୍ଗେ ମଧୁ ସଙ୍ଗୀତ ।
ଗାଇ ତାଳେ ନାଚନ୍ତି         ରୂପଜୀବୀ ସଙ୍ଗରେ,
ତଦ୍ଭବ ପୁଣି ଗୋପାଳ—     କୃଷ୍ଣ ଗୀତ ଆନନ୍ଦରେ ।
ସେ କବି ଦୁହିଙ୍କ ଉଚିତ     ଭକ୍ତି ସଙ୍ଗୀତ ଶୁଣେ ।
କରୁଁ ପରିବେଷ ନବୀନ       ଦମ୍ପତିଙ୍କ ହୃଦରେ,

[ ୬ ]

ହେଉ ନବିଂଶ୍ନରେ ସମାପ୍ତ  ଏହି ବିବାହୋତ୍ସବ,
ଚତୁର୍ଦ୍ଦିଗେ ପୁରୁ ସଘନେ  ଉଠି ଆନନ୍ଦ ରବ ।
“ଜୟ ଯୁବରାଜ ଭବିଷ୍ୟ  ଧରାକ୍ରୋଡ଼ ଈଶ୍ୱର,
ଜୟ ଯୁବରାଜ୍ଞୀ” ଗାଆନ୍ତି  ନର ନାରୀ ନିକର ।
ଶ୍ରୀରାମ ପରତି ସୀତାଙ୍କ  ଯେସନେ ଭକ୍ତି ଅଚଳା,
ଯେସନେ ଦିନମଣି ନିରେକ୍ଷି  ଦହିଉଠେ କମଳା*ଙ୍ଗ
ଶ୍ରୀକୃଷ୍ଣଙ୍କ ପ୍ରତି ରାଧାଙ୍କ  ଯେସନେ ପ୍ରେମ ଅତୁଳ,
ଯାହା ଦେଖାଇଲା ଜଗତରେ  ପ୍ରେମ-ଧନ ଅମୂଲ୍ୟ ।
ସେହି ସୀତା, ପଦ୍ମ ରାଧାଙ୍କ  ସର୍ବ ସଦ୍ଗୁଣ ମାନ,
ଯୁବରାଜ୍ଞୀଙ୍କର ହୃଦୟ  କରି ଦେଉ ମଣ୍ଡନ ।
ସେ ସର୍ବ ସଦ୍ଗୁଣ ବଳରେ  ନାରୀ କୁଳ ଆଦର୍ଶ,
ହୋଇଣ ଉତ୍କଳେ ରଖନ୍ତୁ  ଉତ୍କଳଣୀଙ୍କ ଯଶଃ ।
ବିଶୁଦ୍ଧ ଦାମ୍ପତ୍ୟ ପ୍ରେମକୁ  ଯେସନ୍ତେ କରନ୍ତି ପାଳନ,
ସେ ଏକା ସ୍ୱର୍ଗୀୟ ସନ୍ତାନ  ଏହା ସତ୍ୟ ବଚନ ।

[ ୭ ]

କରେ ମୁହିଁ ଅଭିବାଦନ  ଏହି ଶୁଭ ଦିନରେ,
ଯୁବରାଜ ଯୁବରାଜ୍ଞୀଙ୍କୁ  ଆନନ୍ଦିତ ମନରେ ।
ମୁହିଁ ଦୀନ ହୀନ ପରାଣୀ  ନାହିଁ ମୋର ସମ୍ବଳ,
କଥିବ ହୋଇଣ ଧରଛି  ଦୁଃଖ-ଧନ କେବଳ ।
କେଉଁ ଉପହାର ପ୍ରଦାନ  ଯୁବରାଜଙ୍କ କରେ,

* କମଳା—ପଦ୍ମ ।

[ ୭ ]

ଛୋଡ଼ିବ ତାହାଙ୍କ ଚରଣୁ ଏହି ଶୁଭ ବେଳରେ ।
ଏହା ଭାବି ଚିତ୍ତ ହେଉଛି ସରବଦା ବିକଳ,
ନିର୍ଖିଳି, କେସନେ ଦେଖିବି ତାଙ୍କ ମୁଖ-କମଳ ।
ଏଣିକି ପ୍ରାର୍ଥନା ମାନିକ କରେ ବିଧି ପଦରେ,
ନବ ଦମ୍ପତିଙ୍କୁ ଦୀର୍ଘାୟୁ କରନ୍ତୁ ସେ ଭବରେ ।

[ ୮ ]

ଧନ୍ୟକୋଟ ପୂରି ରହିଛି ଏହି ବିବାହୋତ୍ସବେ,
ଗୀତ,ବାଦ୍ୟ ଖେଳ,ତାମସା, ଗଲ୍ପ ଆନନ୍ଦ ରବେ ।
ନଶୁଣି ପାରିଲି କିଛିତ ତେଣୁ କରେ କ୍ରନ୍ଦନ,
କେବଳ ଏଟଘାଗ୍ରା ଦର୍ଶନେ କଲି ମୁଁ ଆଗମନ ।
ଯାଏ ମୁହିଁ ମର, ଥାଅନ୍ତୁ ଭାଇଗଣ ମୋ ସୁଖେ,
ହସି, ଖେଳ କରି କରମ ଦୂରେ ନଯେଠି ଦୁଃଖେ ।
ରାଜାଙ୍କ ଆସନ ଅଟଳ ହେଉ ବହୁ ବରରେ,
ମନୁଙ୍କ ମତେ ପ୍ରଜା ପାଳନ୍ତୁ ଆନନ୍ଦର ଅନ୍ତରେ ।

—ଃ୦ଃ—

( ସମାପ୍ତ )

---

ଶ୍ରୀ ମହର୍ଷି ମନୁଙ୍କ ସଂହିତା ।